# ସର୍ବମଙ୍ଗଳା ସ୍ତୁତି



ଶାରଦା ପୁସ୍ତକ ଭଣ୍ଡାର, ଭରଟିଆଗାଡ଼ିର, କଟକ

# ଶ୍ରୀ ଶ୍ରୀ ସର୍ବମଙ୍ଗଳା ସ୍ତୁତି

ପାତକାଖଣ୍ଡଣୀ ଦେବୀ ପ୍ରଣମାମି ହରପ୍ରିୟେ
ପୂଜାମି ସ୍ଥାନ ମସ୍ତାକଂ ଅଧିଷ୍ଠାନେ ନନ୍ତ୍ୱ ତବ
ଅଶୁଭଂ ନଧନ ଯାନ୍ତୁ ପ୍ରଣମାନ୍ତ ଉପସ୍ଥିତସ୍ୟଃ
ଏତତ୍ ପ୍ରାର୍ଥିତଂ ଦେବୀ ତ୍ୱମେକଂ ଶରଣଂ ଗତ
ଭକ୍ତି ଦେହିଂ ଗୃହଂ ଦେହିଂ ଦେହିଂମେ ଚରମିବୃନ୍ଦମ୍
ତେ ନନ୍ଦସ୍ୟାତ ମନୁଷ୍ୟାଣାଂ ଯଦା ଦେଶସ୍ଥିତେ ରକ୍ଷଃ
ସର୍ବଦ ଲୋକସଙ୍ଗଞ୍ଜ ପ୍ରଣମ୍ୟନ୍ତି ତବ ପଦାମ୍ବୁଜମ୍
ଏତଦ୍ଧି ପ୍ରାର୍ଥ୍ୟ ଦେବୀ ! ତ୍ୱମେକଂ ଶରଣଂ ଗତଃ

ଜୟ ଜୟ ଜୟ ମାଗୋ ଜଗତ ଜନନୀ
ଜୟ ଜୟ ଜୟ ମାଗୋ ବିଘ୍ନ ବିନାଶିନୀ
ଜୟ ଜୟ ଜୟ ମାଗୋ ସଂକଟ ତାରିଣୀ
ଜୟ ଜୟ ଜୟ ମାଗୋ ନୃମୁଣ୍ଡ ମାଳିନୀ
ଜୟ ଜୟ ଜୟ ମାଗୋ ଶଙ୍କର ଭବାନୀ
ଜୟ ଜୟ ଜୟ ମାଗୋ ତ୍ରିତାପ ହାରିଣୀ
ଜୟ ମାତ ତୋ ଦୟାରେ ମୂର୍ଖ ହୁଏ ଜ୍ଞାନୀ

ଜୟ ତୁ ମଙ୍ଗଳା ମାଗୋ ଜୟ ହରଚଣ୍ଡୀ । ତୋତେ ସୁମରିଲେ ମାଗୋ ଦୁରିତ ଯେ ଖଣ୍ଡି । ବିପଦ କାଳରେ ସୁମରନ୍ତି ଯେଉଁ ଜନ । ମହାଘୋର ସଂକଟରୁ ପିଠାଇ ବନ୍ଧନ । ଅଦୃଶ୍ୟରୁ ଦୃଶ୍ୟ ହୁଏ ତୋ ନାମ ଧରିଲେ । ବିପତ୍ତି ନ ଥାଏ ମାଗୋ ତୋତେ ସୁମରିଲେ । ତୋହର ଯେ ନାମ ମାନ ଯେହୁ ସୁମରଇ । ତାହୁଁ ସଙ୍କଟ ମାଗୋ ବିପତ୍ତି ନ ଥାଇ ॥ ଅନାଥକୁ ଦୟା ମାଗୋ ତୁହ କରୁ ଥାଉ । ଦୁସ୍ତର ପଡ଼ିଲେ ମାଗୋ ପ୍ରାଣୀଙ୍କି ଉଦ୍ଧାରୁ । ଯେତେବେଳେ ପ୍ରାଣୀକସେ ପଡ଼ିଥାଇ କଷ୍ଟ । ତୋତେ ସୁମରିଲେ

ମାଗୋ ଫିଟଇ ସଙ୍କଟ ॥ ଯେ ତୋହର ବାରବ୍ରତ ସବୁ କରେ ନିତ । ପାଏ ସେହୁ ଧନ ଜନ ଅଚଳ ସମ୍ପତ୍ତି । ନମୋ ନାରାୟଣୀ ମାଗୋ ଅପର୍ଣ୍ଣା ମାର୍କଣ୍ଡୀ । ଭ୍ରମଣ ଯେ କରୁ ମାଗୋ ଅର୍ଦ୍ଧନିଶା ରାତ । ଚଣ୍ଡୀ ଯେ ବ୍ରହ୍ମାଣ୍ଡୀ ମାଗୋ ଖଟନ୍ତି ଅପାର । ଏମାନଙ୍କୁ ସଙ୍ଗେ ଘେନି ଭ୍ରମଣ ତୋହର । ପଦ୍ମରେ ଅଳତା ଘଲେ ସିନ୍ଦୂରର ଟୀକା । ରଙ୍ଗ ବସନରେ ତୋର ଶ୍ରୀଅଙ୍ଗ ଶୋଭିତା । ସିଂହର ପୃଷ୍ଠରେ ମାଗୋ ବିଜେ କରି ଯାଉ । ଯେ ମୂର୍ଖେ ପଢ଼ିଲେ ମାଗୋ ନ ବର୍ତ୍ତନ୍ତି ଆଉ । ନମସ୍ତେ ଶାରଳା ମାଗୋ ଶଙ୍କର ଭବାନୀ । ଦୟାକର ମୋତେ ମାଗେ ଦନୁଜ ନାଶିନୀ । କ୍ଷୁଧିନୀ ସମୁଦ୍ରେ ମାଗୋ ବୁଡ଼ିଲା ମୋ ଭେଳା । ଦୁସ୍ତର ପଡ଼ିଲି ମାଗୋ ଉଦ୍ଧାର ମଙ୍ଗଳା । ସଖୀ ସହୋଦର ମାଗୋ ବନ୍ଧୁ ବଳ ନାହିଁ । ବିପତ୍ତି କାଳରେ ସାହା ହୁଅ ମହାମାୟୀ । ବିନ୍ଧ୍ୟଗିରି ବାସିନୀ ମା ହୈମବନ୍ତ ସୁତା । ଏମନ୍ତ ଦ୍ୱାଦଶ ନାମ ଦେଲେ ଯେ ବିଧାତା । ଝଙ୍କଡ଼େ ରହିଲୁ ନାମ ଶାରଳା ବୋଲାଇ କାକଟପୁରେ ରହିଲୁ ମଙ୍ଗଳା ଯେ ତୁହି । ଲହ ଲହ ଜିହ୍ୱା ମାଗୋ ସିନ୍ଦୂରେ ମୁଖ ମଣ୍ଡି । କୋଣାରକେ ରହିଲୁ ମା ଅଭୟା ରାମଚଣ୍ଡୀ । ପୁରୁଷୋତ୍ତମେ ରହିଲୁ ବିମଳା ବୋଲାଇ । ବାଙ୍କିରେ ରହିଲୁ ମାଗୋ ନାମ ଚର୍ଚ୍ଚିକାଇ । ସମ୍ବଲପୁରେ ରହିଲୁ ନାମ ସମଲାଇ । ଯାଜପୁରେ ରହିଲୁ ମା ନାମ ବିରଜାଇ ପଶ୍ଚିମେ ରହିଲୁ ମାତ ନାମହିଙ୍ଗୁଳାଇ । ଭୁବନେଶ୍ୱରେ ରହିଲୁ ଗଉରୀ ବୋଲାଇ । ବାଣପୁରରେ ରହିଲୁ ନାମ ଭଗବତୀ । ସକଳ ଅମର ତୋତେ କରନ୍ତି ଯେ ସ୍ତୁତି । ଉତ୍ତର ଦିଗେ ରହିଲୁ ଚଣ୍ଡୀ ନାମ ବହି । ଏମନ୍ତ ଦ୍ୱାଦଶ ନାମ ବ୍ରହ୍ମା ଗଲେ ଦେଇ । ତୋହର ମହିମା ମାଗୋ କେ ପାରିବ କହି । ମାତ୍ର ବସୁଅଛୁ ବଣଦଣ ମହାମାୟୀ । ନମସ୍ତେ ଚଣ୍ଡିକା ତୁମେ ରୁଦ୍ରଙ୍କର ବାମା

କେ କହି ପାରିବ ମାଗୋ ତୁମ୍ଭର ମହିମା । ଉମ୍ବନ୍ତୁ ମଙ୍ଗା ମାଗୋ ବଚନ ସିଂହ ଠାଣୀ । ମହାମୂର୍ତ୍ତି ରୂପ ମାଗୋ ଅଷ୍ଟ ନୋସାମଣୀ ଲହ ଲହ ଜିହ୍ବା ମାଗୋ ଘୋର ଦନ୍ତ ପାନ୍ତି । ନମୋ ଆଦମାତା ମାଗୋ ବଜେ ସିଂହ ପିଠି । କାନ୍ତି ଯେ ଖର୍ମର ମାଗୋ ଶୋଭେ ବାମକର । ଶଙ୍ଖ ଚକ୍ର ଗଦା ମାଗୋ ଆୟୁଧ ତୋହର । ନାନା ପୁଷ୍ପ ମାଳ ତୋର କୁସୁମ ଚନ୍ଦନ । କପାଳେ ସିନ୍ଦୂର ଗାର ଦଶେ ଶୋଭାବନ । ନମସ୍ତେ ଶାରଳା ମାଗୋ ଚଣ୍ଡୀ ମହାମାୟୀ । ଦୁସ୍ତର ପଡ଼ିଲେ ମାଗୋ ଉଦ୍ଧାରୁ ଯେ ତୁହି । ସେତସ୍କାରେ ତୋତେ ମାଗୋ ସୁମରିଲେ ରାମ । ପ୍ରସନ୍ନ ହୋଇଣ ମାତ କଲୁ ପୂର୍ଣ୍ଣ କାମ । ତୁମ୍ଭର ଆଜ୍ଞାରେ ରାମ ଲଙ୍କା ଜିଲେ ଜୟ । ରାବଣକୁ ମାରି ସୀତା ଆଣି ରାମରାୟ । ନମସ୍ତେ ଶାରଳା ମାଗୋ ରକ୍ଷାକର ମୋତେ । ମୂର୍ଖ ଅରକ୍ଷିତ ଜନ ଆଶ୍ରାକଲି ତୋତେ । ଯେତେବେଳେ ଯାହା ମାଗୋ କରୁଥିବ ଇଚ୍ଛା । ତୋପାଦ ସ୍ମରଣେ ପୂରୁଥିବ ମନବାଞ୍ଛା । ତୁମ୍ଭର ଚରଣେ ମୋର ରହୁ ମନ ଚିତ୍ତ । କହେ ଦୀନହୀନ [illegible] ଉଛର ଆଦମାତ ।

## ଶ୍ରୀ ଶାରଳାଙ୍କ ସ୍ତୁତି

ଜୟ ଜୟ ମହାମାୟୀ ଝଙ୍କଡ ବାସିନୀ । ଦେବୀ ଖାଣାପାଣି ମାଗୋ ଜଗତ ତାରିଣୀ । ଅଭୟ ବର ଦାୟିନୀ ଭବ୍ୟା ପ୍ରଦାୟିନୀ । ଜୟ ଜୟ ସରସ୍ୱତୀ କମଳ ବାସିନୀ । ଜୟ ଜୟ ମହାମାୟୀ ତ୍ରୈଲୋକ୍ୟ ତାରିଣୀ । ଜୟ ଜୟ ମହାମାୟୀ ମହିଷା ମର୍ଦ୍ଦିନୀ ଝଙ୍କଡପୁର ବାସିନୀ ହୈମବନ୍ତ ସୁତା ତୋତେ ସେବାକଣ

ମୂର୍ଖ ପଣ୍ଡିତେ ଗଣିତା । ଅତି ହୀନଜନ ମାଗୋ କିଛି ନଜାଣଇ ନିଜ ଗୁଣେ ଦୟା କରି କର ମାତ ତ୍ରାହି । ଶୁଣୁଥିଲି ସେବିଥିଲେ ଯେ ଶାରଳା ଦାସ । ଈର୍ଦ୍ଧେ ଲେଖିଲେ ଯେ ଭାରତ ଅଷ୍ଟାଦଶ । ପୂର୍ବକାଳେ ତବ ନାମେ ମୂର୍ଖ କାଳିଦାସ । ସର୍ବଜ୍ଞ ପଣ୍ଡିତ ହେଲେ ରହିଅଛି ଯଶ । ଜଗଦୀଶ୍ୱରୀ ତୋ ନାମ ଶୁଣି ମୁଁ ଅଛଇ । ତବ ପାଦେ ଶରଣ ମୁଁ ସତତ ପଶଇ । ମୂର୍ଖ ପାଷଣ୍ଡ ବୋଲିଣ ନକର ମା ଦୂର । ସଦାଅଧମ ସେବକ. ଏତବ କିଙ୍କର । ଏଭବ ସାଗରେ ମାତ ଭସୁ ଯେ ଅଛଇ । ମମ ଦୋଷ ତେଜି ରୋଷ ନକର ମାତ ତ୍ରାହି । ଅକର୍ମେ ଯେ କର୍ମଦାସୀ ବୋଲିଣ ବୋଲଇ । ସର୍ବଦା ରକ୍ଷାକର ମା ଖଣ୍ଡକୁ ଚୋଡାଇ । ଦାରିଦ୍ର୍ୟ ଭଞ୍ଜନୀ ନାମ ମାତ ଅନ୍ନପୂର୍ଣ୍ଣା । ଦୁଃଖ ବିଚ୍ଛେଦ ତୁଅଇ କଲେକ କାମନା । ଭବ ସାଗରକୁ ଭେଳା ମାତ ସର୍ବେଶ୍ୱରୀ । ଅଶେଷ ବ୍ରହ୍ମାଣ୍ଡେ ଖ୍ୟାତି ନାମ ଯେ ଭୁବନ । ନମସ୍ତେ ଶାରଳା ମାଗୋ ଚଣ୍ଡୀ ମହାମାୟୀ ନମସ୍ତେ ରୁଦ୍ରାଣୀ ମାଁ ଉଦ୍ଧାରି ଧରି ହସ୍ତ । ଭାରତେ ଭାରତୀ ନାମ ହୋଇଛି ବିଦିତ । ମା' ସିଂହ ବାହିନୀ ରକ୍ଷାକର ଆଦିମାତ । ଦାସାନୁଦାସ ଅପରାଧ ମାର୍ଜନା ନ କଲେ । ସଂସାରେ ହୋଇବ ନିନ୍ଦା ମାତା ପୁତ୍ର କୁଳେ । ଯେଉଁଜନ ସରସ୍ୱତୀ ନାମକୁ ଧରିବ । କହୁଁଛି ଭସ୍ମ ତାଙ୍କର କାହିଁ ନ ହୋଇବ । ଡାକିନୀ ପିଶାଚିନୀ ଭୟରେ ଭାଜିବ । ରୋଗ ଶୋକ ଆଦି ଭକଭୟ ଦୂର ହେବ ତ୍ରିସନ୍ଧ୍ୟାରେ ଯେଉଁମାନେ ପଢିବେ ଶୁଣିବେ । ସର୍ବପାପ ନାଶି ଅଭୀଷ୍ଟାର୍ଥ ପ୍ରାପ୍ତ ହେବେ । ପ୍ରାତଃକାଳେ ଯେଉଁନର ସ୍ମରଣ କରନ୍ତି । ବ୍ୟାଧିନାଶି ବିଦ୍ୟା ବୁଦ୍ଧି ସର୍ବଫଳ ପାନ୍ତି । ଶତ୍ରୁ ଭୟ ରାଜଭୟ ଦୂର ହୋଇଯାଏ । ସକଳ ପାପରୁ ତୋର ଭକ୍ତ ରକ୍ଷାପାଏ ।

# ଶ୍ରୀ ଦୁର୍ଗାଙ୍କ ସ୍ତୁତି

ଜୟ ଜୟ ଦୁର୍ଗା ମାଗୋ ସଙ୍କଟ ତାରିଣୀ । ଦୁଷ୍ଟ ଦୈତ୍ୟ ନାଶକରି ରଖିଲ ଧରଣୀ । ଦେବତାଙ୍କୁ ରଖିଲ ଯେ ଭକ୍ଷିଲ ଅସୁର । ରକ୍ଷକ ଭକ୍ଷିଣୀ ନାମ ଅଟେ ଯେ ତୁମ୍ଭର । ସ୍ଥାବର ଜଙ୍ଗମ କୀଟ ଆଦି ବୃକ୍ଷଖାଗ୍ନି । ତୁମ୍ଭର ଅଙ୍ଗରୁ ଜାତ ହୋଇଲେ ରୂପ ଘେନି । ତେଣୁକରି ତୋର ନାମ ଅଟଇ ଅରୂପା । ପାଇଲୁ ପରମ ଗତି ଜପିଣ ଅଜାପା । ପ୍ରଥମରେ ଦୁର୍ଗାଦେବୀ, ଦ୍ୱିତୀୟରେ ଉମା । ଅନନ୍ତ ନାମ ତୋହର ଅପାର ମହିମା । ସନ୍ଥଜନମାନଙ୍କୁ ଯେ ତୋହର ସଦୟେ । ଯେସନେ କଳ୍ପିତ ପୂର୍ବ ଗର୍ଭେ ଧରି ମାଏ । ତୃତୀୟେ କାତ୍ୟାୟନୀ ଚତୁର୍ଥେ ନାରାୟଣୀ । ପଞ୍ଚମେ ହୋଇଲୁ ମାଗୋ ଶିବର ଘରଣୀ । ଷଷ୍ଠରେ କୌମାରୀ ନାମ ସପ୍ତମେ କାଳିକା । ଅଷ୍ଟମରେ ଜୟଚଣ୍ଡୀ ନବମେ ଅମ୍ବିକା । ଦଶମେ ବ୍ରହ୍ମାଣୀ ଏକାଦଶରେ ପାର୍ବତୀ । ଦ୍ୱାଦଶରେ ଯୋଗିନୀ ତ୍ରୟୋଦଶେ ଭଗବତୀ । ଚତୁର୍ଦ୍ଦଶେ ସିଂହସ୍ଥ ପଞ୍ଚଦଶରେ ମଙ୍ଗଳା । ଷୋଡ଼ଦଶେ କୁମାରୀ ତୁ ସ୍ୱରୂପେ ଅବଳା । ସତ୍ୟ ସପ୍ତଦଶ ଅଷ୍ଟାଦଶରେ ବଗଳା । ସହସ୍ରେକ ନାମ ତୋର ଅଟେ ମହାମାୟୀ । ଦେବଗଣ ଶ୍ରଦ୍ଧାଭରେ ଥିଲେ ପଦ ଦେଇ । ଏଥିଅନ୍ତେ ସ୍ତୁତି ଯେ କରନ୍ତି ସମସ୍ତ । ଜୟ ତୁ ଦୁର୍ଗା ମାଗୋ ଅନାଦି ଶୁଦ୍ଧକାୟ । ନମସ୍ତେ କାତ୍ୟାୟନୀ ଅନାଦି ମାହେଶ୍ୱରୀ ସତ୍ୟଯୁଗରେ ମହିଷାସୁର ଦର୍ପହାରି । କାଳ ଯେ କରାଳ ମାଗୋ ଅଟୁ ଭୟଙ୍କରୀ । ଶିରରେ ସିନ୍ଦୂର ମାଗୋ ହସ୍ତେ ଜପାମାଳ । ହରଙ୍କ ଘରଣୀ ମାଗୋ କୈଳାସ ମଣ୍ଡଣୀ । ବିନ୍ଧ୍ୟଗିରି ବାସିନୀ ଦୁରିତ ନିବାରିଣୀ । ଅନନ୍ତ କୋଟି ବ୍ରହ୍ମାଣ୍ଡେ ଅସୁର ମାରିଲୁ ଚଉଦ ବ୍ରହ୍ମାଣ୍ଡେ ମହାମାୟୀ ହୋଇଥିଲୁ । ମଧୁପାନରେ ଯେ ତୁମ୍ଭେ ହୋଇ ମତ୍ତ ହେଲ । ରଣଙ୍କ ସ୍ଥଳେ ମାଗୋ ବିଡ଼ାଗଣ

ତୋର । ଅଯୋଧ୍ୟା ରାଜନ ଦଶରଥ ନରପତି । ତାହାର ତନୟ ମୁଁ ଗୋ ଅଟେ ଦାଶରଥି । ରାଜ୍ୟ ତେଜି ମୁହିଁ ମାଗୋ ହୋଇ ବନବାସୀ । ବଇଦେହୀ ହରବଣ ହୋଇଲି ଝିଙ୍ଗାସୀ । ସାଗରକୁ ବାନ୍ଧିଲି ମୁଁ ଋକ୍ଷବଳ ସେନ । ସୁବଳସ୍ଥାରେ ରହିଲି ସ୍ୱର୍ଣ୍ଣଲଙ୍କା ଜିଣି କର୍ଷିଛ୍ୟା ରାଜନ ଯେ ମୋହର ଦୁଃଖ ଦେଖି । ଋକ୍ଷବଳ ସେନ ମାଗୋ ସାହା ହେଲେ ଆସି । ନାଗପାଶ ବନ୍ଧନରେ ପଡ଼ିଅଛି ମୁହିଁ । ଏଥୁ ତ୍ରାହିକର ମୋତେ ଦେବୀ ମହାମାୟୀ । ଦେବତାମାନେ ଖଟନ୍ତି ଯାତ ଭୃତ୍ୟପଣେ । ମୁଁ କସ ଯୁଦ୍ଧ କରିବ ବଳଶାଳୀ ସ୍ଥାନେ । ନର ବାନରକୁ ମାଗୋ ସଙ୍କଟରେ ସେନ ନ ଜାଣିଲି ଯୁଦ୍ଧ ମାଗୋ ଆରମ୍ଭିଲି ଆଣି । ତୋତେ ସୁମରଣା ଯେ କରଇ ଶଚୀପତି । ସ୍ୱର୍ଗପୁର ସମ୍ପଦେ ଗୋ ସୁଖେ ବିଳସନ୍ତି ତେତେ ସୁମରଣା ମାଗୋ କରନ୍ତି କୁବେର । ଧନପତି ପଣେ ମାଗୋ ବିଖ୍ୟାତ ସଂସାର । ବିଷ୍ଣୁଙ୍କର ପୁରେ ମାଗୋ ନାମ ସରସ୍ୱତୀ । ଈଶ୍ୱରଙ୍କ ଘରେ ମାଗୋ ବୋଲାଅ ପାର୍ବତୀ । ଏକ ହସ୍ତେ ଖର୍ପର ମା' ଅନ୍ୟ ହସ୍ତେ ଖଣ୍ଡା । ଅନର୍ଗଳ ତେଜ ମାଗୋ ସିନ୍ଧି ପରଚଣ୍ଡା । ମନ୍ଦାର ଫୁଲରେ ତୋର ଭୂଷଣ ଶରୀର । ବାହୁରେ ତାଡ଼ ତୋହର ଚରଣେ ନୂପୁର ଏମନ୍ତ ସର୍ବ୍ୟରୂପକୁ ଧରିଣ ଗିରିଜା । ବିଷ୍ଣୁରୂପେ ମୋହିଲୁ ସମସ୍ତ ଜନପ୍ରଜା । ସଙ୍କଟ ତାରିଣୀ ମାତ ଉଦ୍ଧରିବ ମୋତେ । ବିପତ୍ତି କାଳରେ ମାତ ଡାକୁଅଛି ତୋତେ । ଅଗମ୍ୟ ଗଡ଼ର ନାମ ଜଗତେ ବିଖ୍ୟାତ । ଅମର ବର ପାଇଛି ବିଶ୍ରବାର ସୁତ । ଅଠର ବଣ୍ଡା କୁମର ତେରଶାହ ନାତି । ପାଞ୍ଚଶତ କୋଟିବଳ ଅସଂଖ୍ୟ ଅଟନ୍ତି । ଚଉଦ ଭୁବନ ମଧ୍ୟେ ଅଟେ ନୃପବର । କ୍ଷତ୍ରିୟମାନଙ୍କ ପରେ ଅଟେ ବୀରବର । ନର ଯେ ବାନର ମାଗୋ ତାର ଭକ୍ଷପାନ । କି ବୁଦ୍ଧି କରିବ ମାଗୋ ବଳବପୁଷ୍ଟନ । ଏମନ୍ତ ଅନେକ ସ୍ତୁତିକଲେ:

ଦାଶରଥି । ପ୍ରସନ୍ନ ହୋଇଲେ ତାଙ୍କୁ ମା ଦୁର୍ଗା ସାର୍ବସା । ଶ୍ରୀରାମ ସମୀପରେ ହଜେକଲେ ଯାଇ । ସିଂହର ପୃଷ୍ଠରେ ଚଢ଼ି ଡମ୍ବରୁ ବଜାଇ । କର୍ମାଭରେ ବାଳବସ୍ତ୍ର ଶନ୍ତାକଲ୍ ମୋତେ । କାହା ତୋର ଅଭିଳାଷ କୁହ ମୋ ଅଗ୍ରତେ । ତେତକ୍ଷଣ ଶ୍ରୀରାମଚନ୍ଦ୍ର ବୋଲୁଛନ୍ତି ବାଣୀ । ଶୁଣ ଗୋ ମାତ ହିମବନ୍ତର ଦୁଲଣୀ । ଜଗତରେ ମୋର ଦୁଃଖ କଳନା ନଯାଇ । ମୋହଠାରୁ ଦୁଃଖୀ ମାତଗୋ ଅନ୍ୟ କେହି ନାହିଁ । ରାଜପୁତ୍ର ହୋଇ ମାତଗୋ ବନବାସ କଲି । କନ୍ଦମୂଳ ଫଳେ ମୁହିଁ ଉଦର ପୋଷିଲି । ମାରଣ ଶଯ୍ୟାରେ ମୁହିଁ କାଟୁଅଛୁ ଦିନ । ପୁଣି କିଁ ବିଧାତା ଆଣି ଦେଲାଏ କଷଣ । ଅରଣ୍ୟେ ଶୁଣିଲି ମାଗୋ ପିତା ଗଲେ ନାଶ । ନଷ୍ଟ ହୋଇଲା ମୋର ଅଯୋଧ୍ୟା ପ୍ରଦେଶ । ଭରତ ରାଜ୍ୟରେ ମାଗୋ ନୃପତି ନୋହିଲା । ମୋତେ ଦେବବୋଲି ଖଡ଼ ବନକୁ ଅଇଲା । ପିତା ସତ୍ୟ ପାଳି ମୁହିଁ ରାଜ୍ୟକୁ ନ ଗଲି । ଗୋଦାବରୀ ଉତ୍ତ ତଟେ ବାସ କରଥିଲି । ଏମନ୍ତ କଷ୍ଟରେ ମୁହିଁ ବଞ୍ଚୁଥିଲି ଦିନ । ସୂର୍ପଣଖାର ଆଦେଶେ ପ୍ରବେଶ ରାବଣ । ମାୟାବୀ ଦୈତ୍ୟ କୁରଙ୍ଗୀ ରୂପକୁ ଦେଖାଇ । ସୁବର୍ଣ୍ଣ କଉତ ତାର ହୋଇଥିଲା ଦେହ । ଶ୍ରଦ୍ଧାଭରେ ସୀତା ବୋଲେ କୁରଙ୍ଗୀକୁ ଆଣ । ତତକ୍ଷଣେ ଗଲି ମାଗୋ ଧରି ଧନୁର୍ବାଣ । ଏଣୁ ବାଣ ହାଣନ୍ତେ ଲକ୍ଷ୍ମଣ ଡାକ ଦେଲା । ଏକାକୀ ଦେଖି ରାବଣ ସୀତାଙ୍କୁ ନେଲା । ଜଟାୟୁ ଓ ହନୁମାନ ବାରତା ଯେ ଦେଲେ । ସମସ୍ତେ ବୃତ୍ତାନ୍ତମାନ ମୋତେ ସେ କହିଲେ । ଇନ୍ଦ୍ରଜିତ ନାମେ ତାର ଅଟଇ କୁମର । ସ୍ୱର୍ଗପୁରେ ପଶିଣ ଜିଣିଲା ବଜ୍ରଧର । ଦେବ ଦଳନ ରଥରେ ଚଢ଼ି ତିନପୁର । ସେ ମୋତେ ପେଷିଲା ମାଗୋ ନାଗଫାଶ ଶର । ନାଗଙ୍କର ଜ୍ୱାଳା ମାଗୋ ସହି ନ ପାରିଲି । ତେଣୁକରି ମୁହିଁ ମାଗୋ ତୋତେ ଆଶ୍ରାକଲି । ଏ ଘୋର ଦୁଃଖରୁ

ମାଗୋ ପାରିକର ମୋତେ । ଏବେ ଗୋ ତୁମ୍ଭର ଯଶ ରହିବ ଜଗତେ । ଆତଙ୍କ ନାଶିମା ବାରେ ମୋତେ ଦୟାକର । ଏହି ବର ଆଜ୍ଞା ହେଉ ଶ୍ରୀମୁଖେ ତୁମ୍ଭର । ରାବଣକୁ ମାରଣ ସୀତାକୁ ନେବ ଫିର । ଅଯୋଧ୍ୟା ରାଜ୍ୟରେ ଯାଇ ଅଭିଷେକ ହେବ । ଏହା ଶୁଣି ପ୍ରସନ୍ନ ହୋଇଲେ ମହାମାୟୀ । ଅସ୍ତୁ ବୋଲି ମହାମାୟୀ ରାମେ ଅଜ୍ଞା ଦେଇ । ଗରୁଡ଼କୁ ମନେ ମନେ ସୁମରିଲେ ରାମ । ରମ୍ୟକ ଦ୍ୱୀପରୁ ଜାଣି ବିଷ୍ଣୁଙ୍କ ବାହନ । ଗରୁଡ଼ ଗମନେ ନାଗମାନେ ପଳାଇଲେ । ଶ୍ରୀରାମ ଲକ୍ଷ୍ମଣ ଦେନ ବନ୍ଧନୁ ଫିଟିଲେ । ତୁମ୍ଭର ଚରଣେ ମାଗୋ ଥାଉ ମୋର ଚିତ୍ତ । କହେ ଦୀନ ବଳରାମ ଭକ୍ତି ଆଦ୍ୟମାତ ।

## ଶ୍ରୀ ଇଚ୍ଛାଜସନ୍ତ ସ୍ତୁତି

ଜୟ ଜୟ ମହାମାୟୀ ଶ୍ରୀ ମଙ୍ଗଳାଚଣ୍ଡୀ । ଲଲାଟରେ ଚିତା ମାଗୋ ସିନ୍ଦୂର ଉପରେ ମଣ୍ଡି । ଶ୍ରବଣେ କୁଣ୍ଡଳ ମାଗୋ ନାସେ ଗଜ ମୋତି । ହସ୍ତରେ ଶୋଭଇ ଖଡ୍‌ଗ ଖର୍ପର ଯେ ଜାତି । ରଙ୍ଗପୁଷ୍ପ ମାଳା ମାଗୋ ଗଳାରେ ଶୋଭିତ । ଆକାଶରେ ଡମ୍ବରୁ ବଜାଇ ଅପ୍ରମିତା । ତୋହର ସେବାରେ ଥାନ୍ତି ଚଉଷଠି ଯୋଗିନୀ । ତୁମ୍ଭେ ଶିବା ତୁମ୍ଭେ ଦୁର୍ଗା ତୁମ୍ଭେ କାତ୍ୟାୟିନୀ । ଆଦ୍ୟଶକ୍ତି ମାଗୋ ତୁମ୍ଭେ ନାମ ଟି ପାର୍ବତୀ । ଅର୍ଦ୍ଧ ଅଙ୍ଗେ ଦେଇଛ ମାତ ଶିବଙ୍କୁ ବିଭୂତି । ଦୁର୍ଗାରୂପେ ଜାତ ମାଗୋ ହୋଇ ମହାମାୟୀ । କୋଟି ଅକ୍ଷୌହିଣୀ ସୈନ୍ୟହତ କଲୁ ତୁମ୍ଭେ । ରକ୍ତବୀର୍ଯ୍ୟ ମହିଷା ଗୋ! ଯମଘଣ୍ଟ ମୂଳେ । ଏହାଙ୍କୁ ନାଶିଲୁ ମାଗୋ ପୃଥିବୀର ଛଳେ ଖେଚରୀ ଭୂଚରୀ ମାଗୋ ଈଶ୍ୱରଙ୍କ ନାରୀ । ସ୍ୱର୍ଗକୁ ରଖିଲୁ ଦେବ ଅରି ନାଶକରି । ନବକୋଟି କାତ୍ୟାୟିନୀ ତୁମ୍ଭେ କଲୁ ଜାତ । ମହିଷାସୁରକୁ ମାଗୋ କରିଲୁ ନିପାତ । ରୁଦ୍ରାଣୀ ଅଟୁ ତୁ ମାଗେ ତୁହ ଭୈରବମୁଖୀ । ଇନ୍ଦ୍ରାଣୀ ବ୍ରାହ୍ମଣୀ ମାଗୋ ତୁମ୍ଭେ ସର୍ବ

ସାକ୍ଷୀ । ଜଗତ ତାରିଣୀ ମାଗୋ ନମୋ ନାରାୟଣୀ । ନର୍ତ୍ତନ
ବନେ ତୋ ନାମ ପଦ୍ମ ସଙ୍କଟୁଣୀ । ଗମନ ମାର୍ଗରେ ମାଗୋ
କୈଳାସ ତୋହର । ସର୍ବ ଦେବଙ୍କର ମାତ ବିଘ୍ନ ନାଶକାରୀ ।
ତେଣୁ କରି ତୋତେ ମାତ ସୁମରଣା କଲି । ଏ ବିପଦୁ ମାତ
ରକ୍ଷା କରିବୁ ତୁ ବୋଲି । ଇଚ୍ଛା ସୁଖେ ମାଗୋ ତୁହି କରୁ ଯେ
ଭ୍ରମଣ । ତେଣୁ ଇଚ୍ଛା ବସନ୍ତ ତୋ ନାମ ହେଲା ଘୂର୍ଣ । ଉଚ
ନୀଚ ଜାତି ମାଗୋ ସମାନ ତୋହର । ପଶୁପକ୍ଷୀ କୀଟ ବୃକ୍ଷ ନା
ମାନବର । ଇଚ୍ଛାସୁଖେ ନାନାରୂପେ ହେଲୁ ଅବତାର । ସ୍ୱୟଂ
ବରଣନ ମିଳେ କଳସ୍ୱପେ ତୋର । ରକ୍ଷାକର ମାଗୋ ତୁହି
ଯୋଡ଼ାଇ ପ୍ରଣତ । କୃପାକରି ମୋ ଦସ୍ୟୁମା ଯେନ ଆଦମାତ ।
ଲାଗିଲେ ଦୟାବନ୍ତ ରଖ ମାଗୋ ତୁହି । ମନ୍ତ୍ରି ସମୁଦ୍ରରେ
ମାଗୋ ମୋ ଭେଳା ବୁଡ଼ଇ । ଜୟ ଜୟ ଭବାନୀ ଗୋ
ଦୟାକର ମୋତେ । କରଇ ପ୍ରାର୍ଥନା ମୂର୍ଦ୍ଧି ଭୂଷ ପାଦତଳେ ।
ଜୟ ଜୟ ଭବାନୀ ଗୋ ଆତଙ୍କ ନାଶିନୀ । ଜୟ ଜୟ ଦୁର୍ଗା
ମାଗୋ ଦୁର୍ଗତି ଖଣ୍ଡିନୀ । ଜୟ ଜୟ ଭବାନୀ ଗୋ ସର୍ବଦେବ
ମାତ । ମହିଷାସୁରକୁ ମାରି ରଖିଲୁ ଜଗତ । ଜୟ ଜୟ ଦୁର୍ଗା
ରୂପ ପଞ୍ଚଧା ତୋହର । ନାନା ରୂପେ ଯୁଗେ ଯୁଗେ ହେଉ
ଅବତାର । ତୁହି ପାର୍ବତୀ ଆବର ଅଟୁ ଆଦମାତ । ମସ୍ତ୍ରଭର
ନବାରଣେ ହୋଇଅଛୁ ଜାତ । ତୁହି ଜୟା ବିଜୟା ଗୋ ତୁ
ଅଟୁ ମୃଡ଼ାଣୀ । ସର୍ବାଣୀ ଶିବାନୀ ତୁହି ଭବାନୀ ରୁଦ୍ରାଣୀ ।
ଦେବମାନଙ୍କ ଉପରେ ପଞ୍ଚକୋଟି ନାମ । ଉତ୍କଳ ଦେଶରେ
ହରଚଣ୍ଡୀ ନାମ ଜାଣ । କୋଶଳ ଦେଶରେ ନାମ ଅଟଇ
କୋଶଳା । କାକଟପୁରରେ ତୋର ନାମ ଯେ ମଙ୍ଗଳା ।
ସୁଣ୍ଡିକଣ୍ଟ ଦେଶରେ ତୋ ନାମ ଘଣ୍ଟିକଣ୍ଟ । କଳିଙ୍ଗ ଦେଶରେ
ମାଗୋ ନାମ ତୋ ଭୂତାଶ୍ରୀ । ତାଳଚେରରେ ଉଜ୍ଜ୍ୱଳ ନାମ
ତୋ ହିଙ୍ଗୁଳା । କଖଡ଼ ମହାଦେଶରେ ଅଟୁ ଯେ ହିଙ୍ଗୁଳା ।

ସମ୍ବଲପୁରରେ ନାମ ତୋର ସମଲାଇ । ଯାଜପୁରରେ ରହିଲୁ ବିରଜା ବୋଲାଇ । ବାଙ୍କୀରେ ରହିଲୁ ମାଗୋ ନାମ ତୋ ଚର୍ଚ୍ଚିକା । ଗଙ୍ଗାକୂଳେ ନାମ ତୋର ଅଟଇ କାଳିକା । ବାଣପୁରେ ରହିଲୁ ମା ନାମ ଭଗବତୀ । ଭୁବନେଶ୍ୱରରେ ତୋର ଗଉରୀ ନାମ ଖ୍ୟାତି । କଟକେ କଟକଚଣ୍ଡୀ ଶ୍ରୀକ୍ଷେତ୍ରେ ବିମଳା । ଝଙ୍କଡ଼େ ରହିଲୁ ମାଗୋ ବୋଲାଇ ଶାରଳା । ବଉମ୍ବାରେ ଭଟ୍ଟାରିକା ନାମ ଯେ ତୋହର । କୋଣାରକେ ତାରଚଣ୍ଡୀ ନାମ ଅଟେ ତୋର । ସିଂହଳରେ ନାମ ତୋର ଅଟଇ ମୋହିନୀ । ମଣି ଦ୍ୱୀପେ ତୋର ନାମ ଅଟଇ ଭବାନୀ । ଲଙ୍କେଶ୍ୱରୀ ନାମ ତୋର ଅଟଇ ଲଙ୍କାରେ । ମାହେଶ୍ୱରୀ ନାମ ତୋର ଅଟେ ଅଯୋଧ୍ୟାରେ । ବସନ୍ତ ଉତ୍ସବେ ଇଚ୍ଛା ବଳବାନ୍ତୁ ତୋର । କାନ୍ତି କ୍ରୋଧ କାନ୍ତି ଶାନ୍ତି ବଜସ୍ୱା ସଂସାର । ତବ ଶୁଣି ଆଗମନେ ଅଧମ କୁଟୀରେ । ଯା ଦେଇ ପୂଜିବ ମୂର୍ତ୍ତି ନ ଅଛୁ ମୋହରେ । ତୁମ୍ଭଙ୍କୁ ଯେ ଛୁଇବେ ତାଙ୍କୁ ନପଡ଼େ ପ୍ରମାଦ । ସବୁ ତେଜ୍ୟାକରି ମାଗୋ ସେବେ ତବ ପାଦ । ତେଣୁକରି ତୋତେ ମାଗୋ ସୁମରିଲି ମୂର୍ତ୍ତି । ଏ ବିପଦୁ ରକ୍ଷାକର ସାହା ମୋତେ ହୋଇ । ତୁହି ମାତ ହୋଇ ଯେବେ କରିବୁ ଅନାଥ । ଶରଣ ରଖିବା ପାଇଁ କେ ହେବ ସମର୍ଥ । ମାରୁ ଅବା ତାରୁ ତୁହି ପଶିଲି ଶରଣ । ଅଧମ ସମଚନ୍ଦ୍ରକୁ କର ମା କାରଣ ।

## ଶ୍ରୀ ସର୍ବମଙ୍ଗଳା ସ୍ତୁତି

କାକଟପୁରରେ ତୋର ନିଜ ଘର ଷୋଳ ସ୍ତମ୍ଭେ କଳ୍ପସ୍ଥାନ । ଅପୁତ୍ରିକ ନାଶେ ପୁତ୍ରଦାନ ପାଏ ଅନ୍ଧପାଏ ଚକ୍ଷୁଦାନ । ମାଗୋ ସର୍ବମଙ୍ଗଳା । କୂଳେ ଲଗାଏ ପ୍ରାଣୀଙ୍କ ଭେଳା । ୧ । ସଙ୍କଟ ତାରିଣୀ ରୂପରେ ନାଶିଲ ନାମ ଅଟଇ ତୋହର । ଘୋର

ସଙ୍କଟରେ ବିପଦ ପଡ଼ିଛୁ ମଙ୍ଗଳ । ତାରେ ଉଦ୍ଧାର । ମା ମହିଷା
ମର୍ଦ୍ଦିନୀ । କେଳେ ଦନୁଜ ବଳ ନାଶିନୀ ।୨। ଶିରରେ ସୁବର୍ଣ୍ଣ
ମୁକୁଟ ଜଳଜଳେ ଛଟା ସୁନ୍ଦର । ରତ୍ନ ଓଢ଼ଣୀ କଟିରେ
ଖଞ୍ଜିଲେ ପାଦରେ ଶୋଭେ ନୂପୁର । ମାଗୋ ସର୍ବ ମଙ୍ଗଳୀ ।
ମଥାପରେ ଶୋଭେ ମଥାମଣି ।୩। କଳାମେଘ ଶାଢୀ ପିନ୍ଧିଅଛ
ଖଡ଼ଗ ତୋତେ ଦିଶଇ ସୁନ୍ଦର । ରଙ୍ଗ ପୁଷ୍ପମାନ ଗଳାରେ ଲମ୍ବିଛି
ପୁଣି ଗୁଞ୍ଜପରି ମାଳ । ମାଗୋ ବ୍ରହ୍ମ ଦୁଲଣୀ । ଲୋକନାଥଙ୍କର
ପାଟରାଣୀ ।୪। ଝଙ୍କଡ଼େ ଶାରଳା ବୋଲାଉ ଜନନୀ ବାଙ୍କୀଗଡ଼େ
ଚର୍ଚ୍ଚିକାଇ । ବାଣପୁରେ ଭଗବତୀ ତୁ ବୋଲାଉ ଯାଜପୁରେ
ବିରଜାଇ । ମାଗୋ ଦୟାସାଗରୀ । ଦୟା ନ କଲେ ଗଲି ମୁଁ
ମରି ।୫। କଟକରେ ସୁପ୍ରତିଷ୍ଠା ଚଣ୍ଡୀନାମ କାକଟପୁରେ ମଙ୍ଗଳା
ସିଦ୍ଧ ରାମଚଣ୍ଡୀ ବୋଲାଅ ଜନନୀ କ୍ଷେତ୍ର ମଧ୍ୟରେ ବିମଳା ।
ମାଗୋ ସିଂହବାହିନୀ । କୃପା କରିବ ମୋଠାରେ ପୁଣି ।୬।
ଗାଳ ମୁଁ ସହଇ ଗର୍ବ ନ ସହଇ ଦଣ୍ଡକେ ଚୂର୍ଣ୍ଣ କରଇ । ସେ
ଯେବେ ହୃଦପଦ୍ମରେ ଭାବୁଥାଏ ଅଭୟବର ଦିଅଇ । ତାରେ
ସଦୟ ହୋଇ । କୃପା ଦୃଷ୍ଟିରେ ମୁଁ ନିରେଖଇ ।୭। ତୋତେ
ଯେଉଁଜନ ମନ୍ଦ କରିବ ବଂଶ ମୁଁ ଛେଦିବି ତାର । ତୋ ଡାକ
ଶୁଣିଲେ କାଳିକା ପେଷିବ ଖଡ଼୍‌ଗେ ଛେଦିବ ତା ଶିର । ଆରେ
କହୁଛି ମୁହିଁ । ତୋର ବିପତ୍ତି ରହିବ ନାହିଁ ।୮। ଶତ୍ରୁ ଯେବେ
ତୋତେ ମନ୍ଦ କରିବେ ମୋ ନାମ ଧରିବୁ ଚିତ୍ତେ । ତୋର
ଡାକକୁ ମୁଁ ଶ୍ରବଣ ଡେରିଛି ରଖିବ ଯାଇ ତୁରିତେ । ଆରେ
କହୁଛି ଏବେ । ସର୍ବଠାରେ ଅଛୁ ତୁ ଭାବିବେ ।୯। ଶ୍ରୀମୁଖରେ
ମାତା ଆଜ୍ଞା ଦେଇଅଛୁ ବୋଇଲେ ରଖିବ ତୋତେ । ତୋତେ
ଯେତେବେଳେ ବିପତ୍ତି ପଡ଼ିବ ପଣତ ଦେବି ତୁରିତେ । ଆରେ
କହୁଛି ତୋତେ । ତୁହି ଭାବୁଥିବୁ ହୃଦେ ମୋତେ ।୧୦। ସନ୍ତୁ

ଯେତେବେଳେ ବାହାର ହୋଇବୁ ସୁମରଣବୁ ନାମ ମୋର । ଆଗେ ଅଗୁଆଣି ହୋଇଥିବ ମୂର୍ତ୍ତି ବୁ ଥିବୁ ମୋର ପଛର । ଆରେ କ୍ଷଣରେ ବଳା । ଶତ୍ରୁ ମୁଖେ ଲଗାଇବ କଳା । ୧୧। ସୁସ୍ଥାନ ଦେଖିଣ ପ୍ରାଚୀ ନଦୀ ତଟେ ଲକ୍ଷ୍ମୀ ଅଟେ କୃଷ୍ଣ ଦାସ । ସ୍ଥାନ ଭକ୍ତ କହେ ମୋ ଦୁଃଖ ନ ଗଲା ମାଆଙ୍କୁ ଶରଣ ଆଶ । ମାଗୋ ରଖିବ ମୋତେ । କୃଷ୍ଣ ପଣ୍ଡିତ ତଳେ କୃଷ୍ଣତେ ।୧୨।

## ଶ୍ରୀ ବୃନ୍ଦାବତୀଙ୍କ ସ୍ତୁତି

ମାଗୋ ତୁଳସୀ ଦେବୀ, ଅଟୁ ଶ୍ରୀକୃଷ୍ଣ ପ୍ରାଣବଲ୍ଲଭୀ । ପ୍ରଭାତୁ ଉଠି ତୋ ମୁଖ ଦେଖିଣ ସନ୍ଧ୍ୟାକାଳେ ସନ୍ଧ୍ୟା ଦେଇ । ଉଦା ବସ୍ତ୍ର ପିନ୍ଧି ତୋ ପାଦ ଧେବଲେ ବୈକୁଣ୍ଠ ଲଭିବା ପାଇଁ । ସ୍ୱର ପାବଣ ସ୍ୱର ଛପି ବସିଛନ୍ତି ମଧ୍ୟେ ବସେ ବସୁନ୍ଧରୀ । ସ୍ୱରପାଶେ ସ୍ୱଖ ସ୍ୱମର ଡାଳିନ୍ତୁ ରୁକ୍ମିଣୀ ଲପେ ତଉରୀ ସତ୍ୟଯୁଗେ ତୋର ସତ୍ୟବତୀ ନାମେ ତ୍ରେତା ଯୁଗରେ ମାଳତୀ । ଦ୍ୱାପର ଯୁଗରେ ନାମ ଯେ ବିପୁଳା କଳିଯୁଗେ ବୃନ୍ଦାବତୀ । ତୁଳସୀର ମାଳ ତୁଳସୀର ଦଳ ତୁଳସୀ ଭୂଷଣ ହୋଇ ତୁଳସୀ ମୂଳରେ ଲପୁ ଲଗାଇଲେ ପାଳଟନ୍ତି ବସ୍ତ୍ରଥାଇ । ମୂଳେ ତୋର ଗଙ୍ଗା ଡାଳେ ତୋର ବିଷ୍ଣୁ ପତ୍ରେ ଦେବତାଙ୍କ ବାସ । ତୋ ପଦ ପଢ଼ିଲେ ମନୋବାଞ୍ଛା ପୂରଇ କହଇ ଗୋଲକ ଦାସ ।

ସ ମା ପ୍ତ

ସୁକାନ୍ତ ପ୍ରିଣ୍ଟର୍ସ, ମାନସିଂହ ପାଟଣା, କଟକ-୮

